ଦାଶ୍ ବେନ୍‌ହୁର








# କିଟିରି ମିଟିରି ଗୀତ

Digitized by srujanika@gmail.com

# କିଚିରି ମିଚିରି ଗୀତ

• ଦାଶ ବେନହୁର •



ନବପଲ୍ଲବ

ଭୁବନେଶ୍ୱର



Digitized by srujanika@gmail.com

# କିଚିରି ମିଚିରି ଗୀତ

ଲେଖକ :
ଦାଶ ବେନହୁର

ପ୍ରକାଶକ :
ନବପଲ୍ଲବ, ଭୁବନେଶ୍ୱର

ପ୍ରଚ୍ଛଦ :
ବଳଦେବ ମହାରଥୀ

ମୁଦ୍ରଣ :
ଶୋଭନ, ଭୁବନେଶ୍ୱର

ପ୍ରକାଶକାଳ :
୧୯୯୯

ମୂଲ୍ୟ :
ବାର ଟଙ୍କା ମାତ୍ର



Digitized by srujanika@gmail.com



- ୧ -

ବାଦଲ ଚରୁଚି
ଦୂର ବିଲମାଳେ
ବିଲରେ ଫସଲ ଖାଇ,
ପବନ ଆସିବ
ଗଉଡ଼ ହେଇଲୋ
ତଡ଼ିବ କୁଆଡ଼େ ନେଇ,
ଆକାଶ ଫରଚା ହବ;
ଅଖଳ ମଖଳ
ରୁପାକାତି ଖରା
ବିଲବାଡି ଛାଇଯିବ ।



Digitized by srujanika@gmail.com



-୨-

କୁଟୁରୁ କୁଟୁରୁ କୁଟୁରୀ କାଇଁ,
କୁଟୁରୀ ମନଟା ମିଠେଇ ପାଇଁ,
ମିଠେଇ ଆଣିବ କିଏ ?
ବାପା ଆଣିଦେଲେ
ମିଠେଇ ପୁଡ଼ା
ଖୁସିରେ କୁଟୁରୀ ଡିଏଁ ।



Digitized by srujanika@gmail.com



-୩-

ଠପର ଠପର
କଠଉ ଚାଲି
ଯୋତାଗୋଡ଼ ମଚମଚ,
କାହା ପୁଅ ସିଏ
ଯାଉଚି ମାଡ଼ି
ମାନୁନାଇଁ ଆଗପଛ ।
ଦିଅ ତା'କୁ ଟିକେ
ବାଟେଇ ଦିଅ
କଣ୍ଟାଝଟା ସବୁ
ହଟେଇ ଦିଅ
ଯିବ ସିଏ ମାମୁଁଘର;
ଫେରିଲା ବେଳକୁ
ଆଣି ଆସିବ
ସୁନାଚଢ଼େଇ ପର ।



Digitized by srujanika@gmail.com



-୪-

ଟୁକୁନା କୁନା ଗୁରେଇ
ହାଣ୍ଡି ମାଠିଆ ସୁରେଇ,
ସୁରେଇ ଗଲାରେ ଗ..ଡ଼ି,
ଟୁକୁନା ହାତରେ ଖ..ଡ଼ି ।
ଲେଖିବ ସିଏ କି..ସ,
ପୁଷି ବିଲେଇ ନି..ଶ ।



Digitized by srujanika@gmail.com



ଦେଖ ସିରିସିରି
ବହିଲା ବାଆ
ଆସିଗଲା ଶୀତଦିନ,
ପାଟି ଥୁରୁଥୁରୁ
ଥରିଲା ଓଠ
ଜାଡ଼ିଗଲା ନାକ କାନ ।
ଆଣ କମ୍ବଳ ଚଦର,
ଦିଅ ଘୋଡ଼େଇ ଏଥର ।
ଯିବରେ ଶୀତ ଛା..ଡ଼ି,
ଶୋଇବା ଘୋଡ଼ିଘା..ଡି ।



Digitized by srujanika@gmail.com

-୬-

ଦିପି ଦିପି ଦୀପାଳି,
ପୁଉଁ ପୁଉଁ ପେଁକାଳୀ ।
ଆଜି ପରା ଦଶରା,
କ୍ଷୀରୀ ପିଠା କାକରା ।
ହବ ବଡ଼ ମଉଜ
ଝୁମୁଝୁମୁ ପାଉଁଜ ।





Digitized by srujanika@gmail.com



-୭-

ଚେଁ ଚୁଁ ଚୁଁ
କୁକୁଡା ଚିଆଁ,
କୁକୁଡା ଚିଆଁ
ଭାରି ଛାନିଆଁ
ଧାଏଁ ଆପଣା ଛାଏଁ;
କେଡ଼େ ବେଗରେ
କୁଆଡ଼େ ଖସେ,
ଭୂଇଁରୁ ଖୋଳି ଖାଏଁ ।



Digitized by srujanika@gmail.com

-୮-



ଗାଆଁଦାଣ୍ଡରେ
ସନିଆଁ ଡାକେ
ଫିଟେଇ ଦିଅ ଗାଈ,
ଗୋଠରେ ଯାଇ
ବୁଲିବ ସିଏ
କଅଁଳ ଘାସ ଖାଇ ।
ବୁଡ଼ିଲେ ବେଳ
ଫେରିବ ଗାଈ
ଧାଇଁବ ଧଇଁସଇଁ,
କୁନି ବାଛୁରି
ଅନେଇଥିବ
ମାଆର ବାଟ ଚାହିଁ ।



Digitized by srujanika@gmail.com



-୯-

କଜଳପାତି
କଳା ନିହାତି
ଚକ୍‌ଚକିଆ ପର,
କେମିତି ଏତେ
ସକାଳୁ ଉଠେ
କୋଉଠି ତା'ର ଘର !
ଦିନଟାସାରା
କୁଆଡ଼େ ବୁଲେ
ବେଳ ବୁଡ଼ିଲେ ଆସେ,
ପୁଉଣି ସେଇ
ବାଡ଼କଣିରେ
ଲାଞ୍ଜ ହଲେଇ ବସେ !



Digitized by srujanika@gmail.com



-୧୦-

କୁଳୁକୁଳୁ ଧାଏଁ
ନଈର ପାଣି
ଗଡ଼ିଆର ପାଣି ଥିର;
ମେଘ ଢାଳିଦେଲା
ବରଷାପାଣି
ମେଘରେ ପାଣିର ଘର ।



Digitized by srujanika@gmail.com



-୧୧-

ସଅଁବାଳୁଆ ସଅଁବାଳୁଆ
ରହମଟିକେ ରହ,
ଦେହରେ ତୁମ ଉଠିଛି କିସ
ସେ କଥା ଏବେ କହ ।
ତୁମ ଦେହରେ ରହିଛି ପୁଣି
କାହିଁକି ଏତେ ଗୋଡ଼,
ଏଡ଼େ ସକାଳୁ କୁଆଡ଼େ ଯାଅ
କାହିଁକି ଧଡ଼ପଡ଼ ?



Digitized by srujanika@gmail.com



-୧୨-

କୁନା ଯାଉଥିଲା
ଦାଣ୍ଡରେ,
ଟୋପି ନାଇଥିଲା
ମୁଣ୍ଡରେ,
ବରଷା ପଡ଼ିଲା
ଥିଇରି ଥିରି
କୁନା ହସିଦେଲା
କିଇରି କିରି ।



Digitized by srujanika@gmail.com



-୧୩-

କାଲୁଭାଇ କାଲୁଭାଇ;
କାଲୁଭାଇ ଆମ
କହିଲେ ଗପ
ଶୁଣୁ ଆମେ ବସି
ପକାଇ ସପ
ଭୋକଶୋଷ ଭୁଲିଯାଇ ।



Digitized by srujanika@gmail.com

-୧୪-

ସକାଳ ହେଲା
ପଡ଼ିଲା ଖରା
ଉଠିଲେ ପାରା ବଣି,
ଟିକି କଣ୍ଢେଇ
ଶୋଇ ପଡ଼ିଛି
ପାରୁନି ଜମା ଜାଣି ।
ଦିଅ ତାକୁ ଏବେ
ଉଠେଇ ଦିଅ,
ମୁହଁ ହାତ ଧୋଇ
ବୁଲେଇ ନିଅ,
କଣ୍ଢେଇ ହବ ଖୁସି
ମୁରୁକି ଦବ ହସି ।





Digitized by srujanika@gmail.com

-୧୫-

ଆରିସା କାକରା  ଖ..ଜା,
ଖୁରୁମା ମିଠେଇ ଗ..ଜା,
ଆଣିବେ ଆଜି ଆ..ଈ;
ଖାଇଲେ ଟୁସି
        ହୋଇବ ଖୁସି
ନାଚିବ ଗୀତ ଗା..ଇ ।





Digitized by srujanika@gmail.com



-୧୬-

ବାପା ଯାଇଥିଲେ
ଦୂର ଜାଗାକୁ
ଆଣିଥିଲେ କୋଳି କେତେ;
ସାଙ୍ଗସାଥୀ ମେଳେ
ବାଣ୍ଟିଲା ଚୁଇଁ
ଖାଇଖାଇ ମୋଟେ
ସରିଲା ନାଇଁ
ଆହୁରି ବଳିଲା ଏତେ ।



Digitized by srujanika@gmail.com



-୧୭-

ରବି ଛବି ଦୁଇ
ଭଉଣୀ ଭାଇ,
ଦିନେ କଳି ନାଇଁ
କଜିଆ ନାଇଁ,
ଖେଳ ଚାଲେ ସାଥୀମେଳେ;
ପୋଷାକ ପତର
ସଫାସୁତୁରା
ହସହସ ସବୁବେଳେ ।



Digitized by srujanika@gmail.com



- ୧ । -

ଲିଟୁ ଆଉ ମିଟୁ
ଦୁଇଟି ଭାଇ
ପାଖାପାଖି ଥିଲେ ବସି;
ଜଣେ ଗାଉଥିଲେ
ଆରଜଣକ
ପାଳି ଧରୁଥାଏ ହସି ।



Digitized by srujanika@gmail.com



-୧୯-

ଖେଳକୁଦ ସରିଗଲା
ହେଇ ରାତି ଆସିଲା,
ଚଉଦିଗ ଜାଲୁଜାଲୁ
ଅନ୍ଧାରଟା ପଶିଲା,

ଦିଅ ବତି ଜଳାଇ;
ଅନ୍ଧାରଟା ଡରକୁଳା
ଯିବ ଲୁଚି ପଳାଇ ।



Digitized by srujanika@gmail.com

-୨୦-

କୁନି ମୁନି ବୋଲି
ଦୁଇ ଭଉଣୀ
ଖେଳୁଥିଲେ ଦିନେ ପୁଚି;
କୋଉଠୁ ଆଇଲା
ଘର ଚଟିଆ
ଗାଇଲା କିଚିରି ମିଚି ।
କୁନିମୁନି ଦୁହେଁ
ହୋଇଲେ ଖୁସି,
ତୁନିତାନି ହେଇ
ଚାହିଁଲେ ବସି ।





Digitized by srujanika@gmail.com



-୨୧-

ସୂରୁଜ ବୁଡ଼ିଲେ
ବୁଡ଼ିଲା ବେଳ
ଚାଲ କୁନାମୁନା
ସରିଲା ଖେଳ
ଝାଡ଼ିଝୁଡ଼ି ଦିଅ ଧୂଳି;
କାଲି ଆଉ ଥରେ
ଖେଳିବା ଆସି
ଆମେ ସବୁ ମିଶି ମିଳି ।



Digitized by srujanika@gmail.com

-୨୨-

ଚୁପ୍ ମୁନା ଚୁପ୍
ନ ହେବୁ ଯଦି ଚୁପ୍
ଝିଙ୍କାରି ଆଉ
ଗାଇବ ନାହିଁ,
ଡରକି ଯାଇ
ଯିବ ପଳାଇ,
ଡେଇଁବ ଏଠୁ ଖୁପ୍
ଚୁପ୍ ମୁନା ଚୁପ୍ ।





Digitized by srujanika@gmail.com



-୨୩-

କୁନା ଯେତେବେଳେ
କ୍ଷୀର ପିଇବ
କ୍ଷୀର ପିଉପିଉ
କୋଳେ ଝୁଲିବ
ଝୁଲିଲେ ମାରିବ ହାଇ;
ଥାପୁଡ଼େଇ ଦେଲେ
ଥିଇରି ଥିରି
ନିଦରେ ପଡ଼ିବ ଶୋଇ ।



Digitized by srujanika@gmail.com






Digitized by srujanika@gmail.com

-୧୫-

ଗୋଲ୍ ମଟୋଲ୍ ଭାଲୁ;
ଭାଲୁକୁ ମରିଚ
କିଏ ଖୁଆଇଲା
ପାଟି କରେ ହାଲୁହାଲୁ ।
ତିନି ଟୋପେ ଭାଲୁ
ପାଟିରେ ଦିଅ,
କୋଳେଇ କାଖେଇ
ବୁଲେଇ ନିଅ ।
ଭାଲୁ ହସିଦବ
କିଇରି କିରି
ପବନ ବହିବ
ସିଇରି ସିରି ।





Digitized by srujanika@gmail.com



-୨୬-

ହୁଡ଼ାରେ ହୁଡ଼ାରେ
ମୁଥା ମୁଥା ଘାସ
ବଗ ଚାଲେ ହଲି ହଲି,
ଆଣ୍ଠୁଯାଏଁ ଗୋଡ଼
ଓଦା ହୋଇଲାଣି
ବିଲମାଳେ ଚାଲିଚାଲି,
ଦଣ୍ଡେଇ ବକଟେ ନାଇଁ,
ବଗୁଲୀ ସିଆଡ଼େ
ଅନେଇ ବସିଚି
ବେସର ତିଅଣ ପାଇଁ ।



Digitized by srujanika@gmail.com



-୨୭-

ପରଜାପତି
ତରକା ଅତି
ଧାଇଁଲେ ତା'ର ପଛେ,
ନ ଦେଇ ଧରା
ଥିଇରିକିନା
କୁଆଡ଼େ ଯାଇ ଲୁଚେ ।
ଡେଣାରେ ତା'ର
ଯାଦୁମନ୍ତର
ଦେହରେ କେତେ ବଳ,
ଦୋଳିଦୋଳିକା
ପବନେ ଉଡ଼େ
ତଳୁ ଉପରୁ ତଳ ।
ଫୁଲରାଇଜେ ଘର;
ମଲ୍ଲିମାଳତୀ
ପାହାଡ଼ ସେଠି
କିଆ କେତକୀ ଝର ।



Digitized by srujanika@gmail.com






Digitized by srujanika@gmail.com



ସାଉଁସାଉଁକା
ଝଡ଼ିବରଷା
ଜାକୁଜାକୁଆ ଘର,
ଜକେଇଲାଣି
ଏଠେଇ ସେଠି
କାହାକୁ ଲାଗେ ଡର,
ଉଠୁଚି ଭୁରୁଭୁରି;
ଉଠେଇ ନିଅ
ପଠେଇ ଦିଅ
ଜନ୍ଦା ଗାଆଁରେ ହୁରି ।



Digitized by srujanika@gmail.com



-୩୦-

ଆକାଶର ଆଖିପତା
    ରାତି ହେଲେ ଖୋଲଇ,
ଆଖିପତା ଖୋଲିଦେଲେ
    ଜହ୍ନତାରା ଦିଶଇ,
    ଅମେଇସା ରାତିରେ;
ଆକାଶ ବି ଶୋଇପଡ଼େ
    ନିଦେଯାଏ ମାତି ରେ ।



Digitized by srujanika@gmail.com



- ୩୧ -

ଜହ୍ନ ହସେ
ତାରା ହସେ
ହସେ ଅଧରାତି,
କଳାମାଛ
ମାଜୁଥାଏ
ଝଲମଲ କାତି,
ଧଳାମେଘ ଥାଇଁ;
ଖୋଜୁଥାଏ
ଖେଳିବାକୁ
ସାଥୀ ଜଣେ ନାଇଁ ।



Digitized by srujanika@gmail.com



\- ୩୨ -

ଛପରଟିଣ
ଉପରେ ପାଣି
ପଡୁଚି ଟିଣିଟିଣି,
କେତେ ନା କେତେ
କୁଆପଥର
ପାରିବ କିଏ ଗଣି,
ବେଙ୍ଗୁଲୀ କାବା କାଠ;
କବାଟ କଣେ
ଲେପେଟି ବସି
ଡାକୁଚି କଟ କଟ ।



Digitized by srujanika@gmail.com



- [illegible] -

ଆମ୍ବ ଦୋଳେ
    ପଣସ ଦୋଳେ
ଦୋଳୁଚି ଆଉ କିଏ,
ଖାଏ ସେ ପିଠା
    ଖାଏ ସେ ମିଠା
ହାଣ୍ଡିଏ କ୍ଷୀର ପିଏ ।
କ୍ଷୀର କ୍ଷୀରିସା
    ମଣ୍ଡା ଆରିସା
ଏଡ଼ିକି ବଡ ମୁଆଁ,
ଏକାଥରକେ
    ଖାଇବ ସିଏ
ବୁଲିବ ସାରା ଗାଆଁ ।



Digitized by srujanika@gmail.com



- ୩୪ -

ରଜାଘରିଆ ଜାଲ,
ଜାଲରେ ଖାଲି
ମଣିମାଣିକ
ମୁକୁତା ଝଲମଲ ।
ଜାଲରେ ଦେଲେ ହାତ,
କୁଆଡ଼େ ହଜେ
ଉଜୁଡ଼ି ଯାଏ
ବୁଢ଼ାରଜାର କ୍ଷେତ ।



Digitized by srujanika@gmail.com




## ନବପଲ୍ଲବର ପିଲାଙ୍କପାଇଁ ଅନ୍ୟ ବହି





**ବହି ସଂଗ୍ରହ ପାଇଁ ଯୋଗାଯୋଗ ଠିକଣା :**

ଏ-୧୨, ହାଉସିଂ ବୋର୍ଡ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର-୭୫୧ ୦୦୩

ମୂଲ୍ୟ : ୧୭ ଟଙ୍କା ମାତ୍ର

Digitized by srujanika@gmail.com